ଶ୍ରୀ

# ମହାପ୍ରସାଦ ମାହାତ୍ମ୍ୟ

**ଶ୍ରୀ ଚନ୍ଦ୍ରଧର ମହାପାତ୍ରଙ୍କ ଦ୍ୱାରା**

ମୂଳ ଶ୍ଳୋକାବଲମ୍ବନେ ରଚିତ



ଶ୍ରୀ ପ୍ରଭାତକୁମାର ମହାପାତ୍ରଙ୍କ ଦ୍ୱାରା

ପ୍ରକାଶିତ

ପ୍ରଥମ ମୁଦ୍ରଣ

ମୂଲ୍ୟ ୦ । ୬ ଛଅ ପଇସା ମାତ୍ର ।

ଶ୍ରୀ

# ମହାପ୍ରସାଦ ମାହାତ୍ମ୍ୟ



ନାରାୟଣଂ ନମସ୍କୃତ୍ୟ ନରଞ୍ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।

ମୁନୟ ଊଚୁଃ

ଘୋରେ କଳିଯୁଗେ ତସ୍ମିଂସ୍ତ୍ରୀପାଦୋଽଧର୍ମବିଗ୍ରହେ
ଧର୍ମସ୍ତତ୍ର ତ୍ୱେକପାଦଃ କଷ୍ଟି ତସ୍ୟ ଭୟାଇରେତ୍ ।
ସର୍ବେଽନୃତପ୍ରଧାନା ହି ଦାମ୍ଭିକାଃ ଶଠବୃତ୍ତୟଃ
ପ୍ରାୟଶ୍ଚାଗୁରବିମୁଖା ଜିହ୍ୱୋପସ୍ଥପରାୟଣାଃ
ନ ଧ୍ୟାୟନ୍ତି ତପସ୍ୟନ୍ତି ବ୍ରତୟନ୍ତି କଦାଚନ ।

ଜୈମିନି ମହାମୁନି ପାଶ । ମିଳିଣ ସକଳ ତାପସ ॥
ବିନୟେ ବୋଲନ୍ତି ବଚନ । ହେ ପ୍ରଭୁ ସର୍ବଜ୍ଞ ଆପଣ ॥
ବେଦ ପୁରାଣ ଆଦି ଶାସ୍ତ୍ର । ତହିଁରେ ତୁମ୍ଭେ ସୁପଣ୍ଡିତ ॥
କଳିରେ ଅଧର୍ମ ତ୍ରିପାଦ । ଧର୍ମ ରହିଛି ଏକ ପାଦ ॥
ଜଗତେ ଯେତେ ନାରୀ ନର । ହୋଇଲେ ଠକ ଯେ ତସ୍କର ॥
ପାତକୀ ଶଠ ଯେ ଅସତ । ସୁଖ ବିଳାସେ ସଦା ମତ୍ତ ॥
ସତ୍ୟ ପଥରୁ ଭ୍ରଷ୍ଟ ହେଲେ । ପୂଜା ବରତ ନ କରିଲେ ॥
କ୍ରୋଧ ସ୍ୱଭାବ ଲୋଭ ବଶ । ଅନ୍ୟର କଷ୍ଟରେ ହରଷ ॥
ଏମନ୍ତେ ପାପ କର୍ମମାନ । କ୍ରମେ ବଢ଼ିଲା ଦିନୁ ଦିନ ॥
ପାତକ କରି ଅପ୍ରମିତ । ଧର୍ମରୁ ହୋଇଲେ ପତିତ ॥
ସେ କି ପତିତ ମହୀତଳେ । ରହିଥିବେଟି କାଳେ କାଳେ ॥

କି ଭଲେ ତାଙ୍କ ସଦଗତି । କେମନ୍ତେ ପାଇବେ ମୁକତି ॥
କିବା ଉପାୟ ଅଛି କହ । ମନରୁ ଫେଡ଼ ମୋ ସନ୍ଦେହ ॥

ଜୈମିନିରୁବାଚ

ଶୃଣୁଧ୍ୱଂ ମୁନୟଃ ସର୍ବେ ରହସ୍ୟଂ ପରମଂ ହି ତତ୍
ଅବୈଷ୍ଣବାନାଂ ଶ୍ରବଣେ ଭକ୍ତିସ୍ତତ୍ର ନ ଜାୟତେ ।

ହେ ମୁନିଗଣ ସାବଧାନେ । ଶୁଣ ନିର୍ମଳ ସ୍ଥିର ମନେ ॥
ଅତି ଗୁପତ ସାର ତତ୍ତ୍ୱ । ସପତ ଲୋକେ ଅବିଦିତ ॥
ବିଷ୍ଣୁରେ ଯାର ନାହିଁ ମତି । କାହୁଁ ହୋଇବ ତାର ଭକ୍ତି ॥
କଳିରେ ଜୀବ ହିତପାଇଁ । ବିସ୍ତାରି କହିବଇଁ ମୁହିଁ ॥
ଭାରତ ଖଣ୍ଡର ମଧ୍ୟର । ପୁରୁଷୋତ୍ତମ କ୍ଷେତ୍ର ସାର ॥
ତହିଁରେ ବ୍ରହ୍ମାଣ୍ଡ ଗୋସାଇଁ । ଅଛନ୍ତି ଦାରୁରୂପ ବହି ॥
ଧାର୍ମିକେ ବହୁ ପରକାରେ । ପୂଜନ୍ତି ନାନା ଉପଚାରେ ॥
ଦୟାସାଗର ଜଗନ୍ନାଥେ । ସ୍ନାନ କରାଇ ପଞ୍ଚାମୃତେ ॥
ଅଗୁରୁ କର୍ପୂର ଚନ୍ଦନ । ଶ୍ରୀଅଙ୍ଗେ କରନ୍ତି ଲେପନ ॥
ସୁଗନ୍ଧ ପୁଷ୍ପ ମାଲ୍ୟମାନ । ପ୍ରଦୀପ ବସନ ଭୂଷଣ ॥
ଭୋଜ୍ୟାଦି ନାନା ଉପଚାରେ । ଅର୍ଚ୍ଚନା କରନ୍ତି ଶ୍ରୀଧରେ ॥

ଲୌକିକଃ ବ୍ୟବହାରୋଽୟଂ ପରତ ଶ୍ରୀ ସ୍ୱୟଂ ଧ୍ରୁବମ୍
ଭୁଙ୍କ୍ତେ ନାରାୟଣୋ ନିତ୍ୟଂ ତସ୍ୟା ପକ୍ୱଂ ଶରୀରବାନ୍ ।

ସୁମିଷ୍ଟ ନାନା ଜାତି ଅନ୍ନ । ଅପର ବିବିଧ ବ୍ୟଞ୍ଜନ ॥
ନିଜେ କମଳା ପାକଶାଳେ । ରାନ୍ଧନ୍ତି ମନ ନିରମଳେ ॥
ତାହା ପ୍ରତ୍ୟକ୍ଷ ନାରାୟଣ । ଆନନ୍ଦେ କରନ୍ତି ଭୋଜନ ॥
ବିଷ୍ଣୁଙ୍କ ନିବେଦିତ ଅନ୍ନ । ମହାପ୍ରସାଦ ଅତି ପୁଣ୍ୟ ॥
ଭୁଞ୍ଜିଲେ ଅଶେଷ ଦୁରିତ । ଦଣ୍ଡକେ ହୁଅଇ ଖଣ୍ଡିତ ॥
ସୁରାପାନାଦି ମହାପାପ । କ୍ଷଣକେ ହୋଇଯାଏ ଲୋପ ॥
ଏସ ମହାପ୍ରସାଦ ମହିମା । କେ କଳି ପାରିବ ତା ସୀମା ॥

ଅଘ୍ରାଣେ ମନକୃତ ପାପ । ପଲକେ ହୋଇଯାଏ ଲୋପ ॥
ନୟନ ଯେତେ ପାପ କରେ । ଦର୍ଶନ ମାତ୍ରେ ଯାଏ ଦୂରେ ॥
ବଚନେ ଅଥବା ଶ୍ରବଣେ । ଆବର ଅସତ୍ୟ ଭାଷଣେ ॥
ଯେ ପାପମାନ ହୁଏ ଜାତ । ଆସ୍ୱାଦେ ହୁଏ ଦୂରୀଭୂତ ॥
ଅଶେଷ ପାପ ଚର୍ମକୃତ । ଛୁଇଁଲେ ହୁଏ ବିଦୂରିତ ॥
ଯେ ଅଙ୍ଗେ ପ୍ରସାଦ ଲେପଇ । ତାହାର ଯେତେ ପାପ ଥାଇ ॥
ଯେସନେ ସୂର୍ଯ୍ୟଙ୍କ ଉଦୟେ । ଘୋର ଅନ୍ଧାର ନାଶଯାଏ ॥
ତେସନେ ତାର ପାପମାନ । ହୁଅନ୍ତି ସମୂଳେ ଖଣ୍ଡନ ॥

ମହାପବିତ୍ରଂ ହି ହରେର୍ନିବେଦିତଂ
ନିବେଦୟେଦ୍ ଯଃ ପିତୃର୍ଦେବକର୍ମସୁ ।
ତୃପ୍ୟନ୍ତି ତସ୍ମୈ ପିତରଃ ସୁରାଶ୍ଚ
ପ୍ରଯାନ୍ତି ଲୋକଂ ମଧୁସୂଦନସ୍ୟ ।

ଦେବତା ଅବା ପିତୃଗଣ । କାର୍ଯ୍ୟେ ଯେ କରେ ନିବେଦନ
ଜଗନ୍ନାଥଙ୍କ ନୈବେଦ୍ୟାନ୍ନ । ପରମ ପବିତ୍ର ମହାନ ॥
ତା ପ୍ରତି ଦେବ ପିତୃଗଣ । ଅତିରେ ହୁଅନ୍ତି ପ୍ରସନ୍ନ ॥
ସେ ଜନ ଦେହ ଅନ୍ତେ ଯାଇ । ବୈକୁଣ୍ଠ ଧାମରେ ବସଇ ॥
ପ୍ରଭୁଙ୍କ ନୈବେଦ୍ୟାନ୍ନ ଭଳି । ନାହିଁ ପବିତ୍ର ତହୁଁ ବଳି ॥
କି ଅବା ଅଧିକ କହିବି । ମାନବରୂପେ ଦେବ ଦେବୀ ॥
କରଣ ମର୍ତ୍ତ୍ୟେ ଆଗମନ । କରନ୍ତି ପ୍ରସାଦ ସେବନ ॥

---

## ଶ୍ୱେତରାଜ ଚରିତ

ଶ୍ୱେତୋନାମ ମହାରାଜଃ ପୁରା ତ୍ରେତାଯୁଗୋଽଭବେତ୍
ବ୍ରତସ୍ଥୋଽସୌ ମହାଭକ୍ତ୍ୟଂ ଚକାର ପୁରୁଷୋତ୍ତମେ ।

ହେ ମୁନିଗଣ ଏବେ ଶୁଣ । ଥିଲେଟି ତ୍ରେତାରେ ରାଜନ ॥
ନାମ ତାଙ୍କର ଥିଲା ଶ୍ୱେତ । ସକଳ ଶାସ୍ତ୍ର ଅବଗତ ॥

ରାଜସତ୍ତମ ଅନୁକ୍ଷଣ । କରଣେ ବ୍ରତ ଆଚରଣେ ॥
ପୁରୁଷୋତ୍ତମେ ଦେଇ ମତ । ପ୍ରକାଶି ଅଚଳ ଭକତ ॥
ଇନ୍ଦ୍ରଦ୍ୟୁମ୍ନଙ୍କ ପରି ଶ୍ରେଷ୍ଠ । ପୂଜନ୍ତି ଜଗତର ନାଥ ॥
ହୋଇଣ ପୁଲକିତ ମନ । କରନ୍ତି ଭୋଗ ଅନୁଷ୍ଠାନ ॥
ବୈଷ୍ଣବ ଶାସ୍ତ୍ରମାନଙ୍କରେ । ବିଧାନ ଅଛି ଯେ ପ୍ରକାରେ ॥
ପବିତ୍ର ଷଡ଼ରସ ପୂର୍ଣ୍ଣ । ଅନ୍ନାଦି ଅଶେଷ ବ୍ୟଞ୍ଜନ ॥
କୁସୁମ ସୁରଭି ଅବର । ଶ୍ରୀଅଙ୍ଗ ମଣ୍ଡନ ସମ୍ଭାର ॥
ଜଗନ୍ନାଥଙ୍କ ସନ୍ତୋଷାର୍ଥ । ଅର୍ପନ୍ତି ନିତ୍ୟ ଯଥାଯଥ ॥
ପ୍ରତ୍ୟହ ଉଚିତ କାଳରେ । ମଧୁର ନୃତ୍ୟ ଗୀତାଦିରେ ॥
ସେବନ୍ତି ପ୍ରଭୁ ନାରାୟଣେ । ନିଷ୍ଠା କରଣେ ଶୁଦ୍ଧମନେ ॥

ପ୍ରାତଃ ପୂଜନବେଳାୟାଂ ହରିଂ ଦ୍ରଷ୍ଟୁଂ ଜଗାମ ସ ।
କସ୍ମିଂଶ୍ଚିଦ୍ଦିବସେ ରାଜା ପୂଜ୍ୟମାନଂ ଦଦର୍ଶ ତମ୍ ॥

ଦିନେ ସେ ରାଜା ପ୍ରାତଃକାଳେ । ପୁରୁଷୋତ୍ତମ ପୂଜାବେଳେ ॥
ଗୋବିନ୍ଦ ଦରଶନ ପାଇଁ । ମିଳିଲେ ଦେଉଳରେ ଯାଇ ॥
ଦେଖିଲେ ବିପ୍ରେ ଶୁଦ୍ଧମନେ । ପୂଜୁ ଅଛନ୍ତି ନାରାୟଣେ ॥
କରିଣ ସାଷ୍ଟାଙ୍ଗେ ପ୍ରଣତ । କର ଯୋଡ଼ିଣ କଲେ ସ୍ତୁତ ॥
ହେ ପ୍ରଭୁ ଜଗତ ଗୋସାଇଁ । ଅତି ଅଧମ ଅଜ୍ଞ ମୁହିଁ ॥
ପୂଜାର ବିଧାନ ତୋହର । ବ୍ରହ୍ମାଦି ଦେବେ ଅଗୋଚର ॥
ମୁଁ ହୀନ କିଛି ନ ଜାଣଇ । ମୋ ଦୋଷ କ୍ଷମା କର ତୁହି ॥
ଏମନ୍ତେ ସ୍ତୁତି କରି ଶେଷ । ଉଭା ହୋଇଲେ ଦ୍ୱାର ପାଶ ॥
ଦେଖିଲେ ନାନା ଉପଚାର । ଅତି ଉତ୍ତମ ମନୋହର ॥
ଭୋଗ୍ୟ ପଦାର୍ଥ ଅଗଣିତ । ଗୋବିନ୍ଦ ସମ୍ମୁଖେ ସ୍ଥାପିତ ॥
ଏମନ୍ତେ ଦେଖି ସେ ରାଜନ । ଈଷତେ ମନେ କଲେ ଧ୍ୟାନ ॥
ଶିବ ବ୍ରହ୍ମାଦି ସର୍ବ ସୁରେ । ବିବିଧ ଦିବ୍ୟ ଉପଚାରେ ॥
ପୂଜନେ ଦେବ ଜନାର୍ଦ୍ଦନ । କେବେହେଁ ନୋହିଲେ ଭାଜନ

ବାହ୍ୟକ ଉପଚାର ଚୟ । ଭାବରେ ଭୂଷିତ ନିଶ୍ଚୟ ॥
ଏଣୁ ପୂଜନ୍ତି ଯତିମାନେ । ମାନସ ଉପଚାର ଦାନେ ॥
ସାମାନ୍ୟ ମାନବ କଳ୍ପିତ । ଭୋଗ୍ୟ ପଦାର୍ଥ ଅକଳ୍ପିତ ॥
କେମନ୍ତେ କରିବେ ଗ୍ରହଣ । ସେ ଦେବ ଦେବ ଜନାର୍ଦ୍ଦନ ॥

ଇତ୍ଥଂ ସଞ୍ଚିନ୍ତୟନ୍ରାଜା ଦିବ୍ୟାସନଗତଂ ହରିଂ ।
ଭୁଞ୍ଜାନମନ୍ନପାନାଦ୍ୟଂ ଶ୍ରିୟା ସୁପରିବେଷିତଂ ॥
ଦୃଷ୍ଟ୍ୱା କୃତାର୍ଥମାତ୍ମାନଂ ମନ୍ୟମାନସ୍ତଦଦ୍ଭୁତଂ ।
ପ୍ରୋନ୍ମୀଲିତାକ୍ଷଃ ସ ପୁନଃ ପ୍ରାଗ୍‌ଦୃଷ୍ଟଂ ସମବୈକ୍ଷତ ॥

ହେ ମୁନି ଶୁଣ ମନ ଦେଇ । ଏମନ୍ତେ ଶ୍ୱେତ ନରସାଇଁ ॥
ଧ୍ୟାନ କରନ୍ତେ ଏକଚିତ୍ତେ । ଦେଖିଲେ ଦିବ୍ୟଜ୍ଞାନ ନେତ୍ରେ ॥
ଆପଣେ ପ୍ରଭୁ ଦାମୋଦର । ବସିଣ ଦିବ୍ୟାସନ ପର ॥
ରାଜନ ନିବେଦିତ ଅନ୍ନ । ଆନନ୍ଦେ କରନ୍ତି ଭୋଜନ ॥
କମଳା ଦେବୀ ଏକପାଶ । ପରିଧାନରେ ଦିବ୍ୟବାସ ॥
ଅମୂଲ୍ୟ ସୁଗନ୍ଧ ମଣ୍ଡିତା । ଦିବ୍ୟାଲଙ୍କାରେ ସୁଶୋଭିତା ॥
ରତ୍ନ ନୂପୁର ଶବଦରେ । ଦେବ ଲୋକଙ୍କି ଧ୍ୱନି କରେ ॥
କାଞ୍ଚନ ପାତ୍ର ହସ୍ତେ ଧରି । ପରିବେଷନ୍ତି ଯତ୍ନ କରି ॥
ଅନ୍ନାଦି ଅଶେଷ ବ୍ୟଞ୍ଜନ । ଷଡ଼ରସରେ ପରିପୂର୍ଣ୍ଣ ॥
ଯାହାକୁ ଯଥା ନିୟମରେ । ଅତି ଆନନ୍ଦେ ଯତ୍ନଭରେ ॥
ସେ ପ୍ରଭୁ ଦେବ ନାରାୟଣେ । ଯେତେକ ଥିଲେ ବନ୍ଧୁଗଣେ ॥
ବେଢ଼ିଣ ବସି ଚଉଦିଗେ । ଭୋଜନ କରନ୍ତି ସରାଗେ ॥
ଏହି ଘଟଣା ଅଦଭୁତ । ଦେଖି ଚକିତ ନରନାଥ ॥
ଭାବଇ ହେଲି କୃତକୃତ୍ୟ । ଜୀବନ ମୋହର କୃତାର୍ଥ ॥
ତହୁଁ ଭାଙ୍ଗନ୍ତେ ତାଙ୍କ ଧ୍ୟାନ । ଚାହିଁଲେ ଫିଟାଇ ନୟନ ॥
ପୂର୍ବେ ସେ ଦେଖିଥିଲେ ଯାହା । ତେମନ୍ତେ ରହିଅଛି ତାହା ॥
ସେହିଦିନରୁ ନରରାଣ । ସମର୍ପି ଦେଇ ମନ ପ୍ରାଣ ॥

ପ୍ରକାଶି ଅଟଳ ଭକତ । ଅଚ୍ୟୁତେ ପୂଜା କରୁଥାନ୍ତି ॥
ଏମନ୍ତେ ଯାନ୍ତେ କାଳ ବିତ । ଭାଳନ୍ତି ଶ୍ୱେତ ନରପତି ॥
କି କାର୍ଯ୍ୟ ମୋର ରାଜପଣେ । ମୋ ରାଜ୍ୟେ ପ୍ରଜା ଅକାରଣେ ॥
ଅତି ଅକାଳେ କାଳଗ୍ରାସେ । ପଡନ୍ତି ହୁଅନ୍ତି କି ଦୋଷେ ॥
ସକଳ ଆତ୍ମୀୟ ସ୍ୱଜନ । ବିକଳେ କରନ୍ତି ରୋଦନ ॥
ଯଦି ବା ଛାଡ଼ି ଏ ସଂସାର । ଚଳିଲେ ଯମରାଜା ପୁର ॥
କାହିଁ ତାଙ୍କର ସଦଗତି । କାହିଁ ବା ଆତ୍ମାର ମୁକତି ॥
ଏମନ୍ତେ ଚିନ୍ତିତ ବିଶେଷ । ମନରେ ନାହିଁ ସୁଖ ଲେଶ ॥
ଅକାଳ ମୃତ୍ୟୁ ନିବାରଣେ । ଆତ୍ମାର ମୁକତି କାରଣେ ॥
ଆଚରି ଉପବାସ ବ୍ରତ । କଠୋର ତପସ୍ୟାରେ ରତ ॥
ଚିନ୍ତିଲେ ମନ୍ତ୍ରରାଜ ଜପ । ଯହିଁର ଫଳଟି ଅମାପ ॥
ଏମନ୍ତରୂପେ ବର୍ଷଶତ । କ୍ରମେ ଯେ ହୋଇଲା ଅତୀତ ॥
ରାଜନ ତପସ୍ୟା କଠିଣ । ଦେଖି ପ୍ରସନ୍ନ ନାରାୟଣ ॥
ଦିନେ ସେ ରାଜା ଧ୍ୟାନଗତେ । ଦେଖିଲେ ପ୍ରଭୁ ଜଗନ୍ନାଥେ ॥
ନୃସିଂହ ଦେବ ରୂପ ବହି । ସମ୍ମୁଖେ ଆବିର୍ଭୂତ ହୋଇ ॥
ବସିଣ ଯୋଗ ପଦ୍ମାସନେ । ଅଳପ ସହାସ୍ୟ ବଦନେ ॥
ବାମେ କମଳା ଦେବୀ ବସି । ସରାଗେ ମନ୍ଦ ମନ୍ଦ ହସି ॥
ତାହାଙ୍କୁ ଘେରି ସିଦ୍ଧଗଣେ । କରୁଅଛନ୍ତି ସ୍ତବଗାନ ॥
ନୃସିଂହ ନାଥ ଦରଶନେ । ଭୟେ ବିସ୍ମିତ ରାଜା ମନେ ॥
ବୋଇଲେ ମୁହିଁ ଅକିଞ୍ଚନ । ନ ଜାଣେ ଭଜନ ପୂଜନ ॥
ବିଷୟ ବାସନା ଜଡ଼ିତ । ଚିତ୍ତ ମୋହର ପାପଗ୍ରସ୍ତ ॥
ନ ଜାଣେ ପୂଜାର ବିଧାନ । କ୍ଷମା କର ମୋ ଦୋଷମାନ ॥
ତୋ ବିନା ନାହିଁ ଗତି ଆନ । ହେ ନାଥ ହୁଅ ତୁ ପ୍ରସନ୍ନ ॥
ଏମନ୍ତ ବୋଲି ନରନାଥ । ସାଷ୍ଟାଙ୍ଗେ ହେଲକ ପ୍ରଣତ ॥
ଭକ୍ତ ବତ୍ସଳ ନରସିଂହ । ଭକତେ ବହି ଅତି ସ୍ନେହ ॥

ସମ୍ବୋଧି ଶ୍ୱେତ ନରବରେ । ବୋଲନ୍ତି ବଚନ ସାଦରେ ॥

ନରସିଂହ ଉବାଚ

ଉତ୍ତିଷ୍ଠ ବତ୍ସ । ଭକ୍ତ୍ୟା ତେ ପ୍ରସନ୍ନଂ ବିଦ୍ଧି ମାଂ ପ୍ରଭୁଂ ।
ମୟି ପ୍ରସନ୍ନେ ନାଲଭ୍ୟଂ ବରଂ ତଂ ପ୍ରାର୍ଥୟତାଂ ଭବାନ୍ ॥

ହେ ବତ୍ସ । ଏବେ ଉଠ ତୁହି । ତୋ ଭକ୍ତି ଦେଖି ପ୍ରୀତ ମୁହିଁ ॥
ମୁଁ ବାରେ ପ୍ରସନ୍ନ ହୋଇଲେ । କି ବା ନ ମିଳେ ଭୂମଣ୍ଡଳେ ॥
ତେଣୁ ତୁ ମନ ଇଚ୍ଛା ବର । ମାଗ ଆମ୍ଭଠୁଁ ଯେ ପ୍ରକାର ॥
ନୃସିଂହ ଦେବଙ୍କ ଏ ବାଣୀ । ଶ୍ୱେତ ରାଜନ କର୍ଣ୍ଣେ ଶୁଣି ॥
କର ଯୋଡ଼ିଣ ହର୍ଷମନେ । ବିନୟେ ବୋଲନ୍ତି ଏସନେ ॥

ଶ୍ୱେତ ଉବାଚ

ହେ ପ୍ରଭୁ ଯେବେ ମୋର ପ୍ରତି । ଜାତ ହୋଇଲା ତବ ପ୍ରୀତି ॥
ତୁ ନାଥ କରୁଣା ବାରିଧି । ଦିଅ ତୁ ବର ଏହି ବିଧି ॥
ତୋହ ପାଶରେ ସଦା ଥିବି । ତୋ ପାଦେ ଆଶ୍ରୟ ପାଇବି ॥
ମୋହର ରାଜତ୍ୱ କାଳରେ । ମୋ ରାଜ୍ୟବାସୀ ଯେତେ ନରେ
ଅକାଳ କାଳ ଗ୍ରାସେ କେବେ । ଯେମନ୍ତେ ପତିତ ନୋହିବେ
ବୃଦ୍ଧ କାଳରେ ଦେହ ତ୍ୟଜି । ଅନ୍ତେ ରହିବ ମୋକ୍ଷ ଭଜି ॥
ତା ଶୁଣି ନରସିଂହ ନାଥ । ରାଜନେ ବୋଇଲେ ଏମନ୍ତ ॥

ନରସିଂହ ଉବାଚ

ତତ୍ ଶ୍ରୁତ୍ୱା ଭଗବାନ୍ ପ୍ରାହ ଶ୍ୱେତରାଜାନମୁତ୍ତମମ୍
ଶ୍ୱେତ ତେ ବାଞ୍ଛିତଂ ଭୂୟାତ୍ତିଷ୍ଠ ତ୍ୱଂ ମମ ଦକ୍ଷିଣେ ॥

ଯାହା ଇଚ୍ଛିଲ ନରନାହା । ନିଶ୍ଚେ ସଫଳ ହେବ ତାହା ॥
ଦକ୍ଷିଣ ଭାଗରେ ମୋହର । ଅବସ୍ଥାନଟି ହେବ ତୋର ॥
ଅବର ବରଷ ହଜାର । ରାଜପଣେ ତୁ ଭୋଗ କର ॥
ମୋହର ପ୍ରସାଦ ସେବଣ । ଅଶେଷ ପାପୁଁ ହୁଅ ତ୍ରାଣ ॥
ଶରୀର ହୋଇଲେ ଶୁଦ୍ଧ ତୋର । ରହିବୁ ନିକଟେ ମୋହର ॥

ଏବେ ତୁ ଶୁଣ ନରସାଇଁ । ଗୁପତ କଥା କହୁବଇଁ ॥
ଅକ୍ଷୟ ବଟ ସାଗରର । ମଧ୍ୟ ସ୍ଥାନଟି କ୍ଷେତ୍ରସାର ॥
ଏହୁ କ୍ଷେତ୍ରର ଏକଭାଗେ । ମୀନ ଶର୍ଷସ୍ତ୍ର ବସ୍ତୁ ଅଛେ ॥
ତୁମ୍ଭେ ସର୍ବଦା ଥିବ ତହୁଁ । ଶ୍ୱେତ ମାଧବ ନାମ ବହୁ ॥
ତୁମ୍ଭ ଦେହଙ୍କ ମଧ୍ୟେ ଥାଇ । ଯେହୁ ଜୀବନ ବିସର୍ଜଇ ॥
ସେ ଅଟେ ଅତ ପୁଣ୍ୟବନ୍ତ । ମୋକ୍ଷ ତାହାର ସୁନିଶ୍ଚିତ ॥
ଏ ସ୍ଥାନ ଉତ୍ତର ଦଗରେ । ଅଛଇଁ ଏକ ସରୋବରେ ॥
ତାହାର ପୁଣ୍ୟମୟ ଜଳ । ନାଶଇ ପାତକ ସକଳ ॥
ଯେ ନର ତହିଁ ସ୍ନାନ କରି । ତା ଜଳେ ଅଚମନ ସାରି ॥
ଦକ୍ଷିଣ କୂଳେ ତୁମ୍ଭ ଦୁଇ । ମଧ୍ୟେ ଜୀବନ ବିସର୍ଜଇ ॥
ତାହାର ମୋକ୍ଷ ସୁନିଶ୍ଚୟ । ଏଥିରେ ନାହିଁଟି ସଂଶୟ ॥
ତବ ରାଜ୍ୟରେ ଯେତେ ନରେ । ମନ ନିର୍ମଳେ ଭକ୍ତିଭରେ ॥
ମୋ ମହା ପ୍ରସାଦ ଉତ୍ତମ । ଭୁଞ୍ଜିବେ ଅମୃତର ସମ ॥
ଅକାଳ ମୃତ୍ୟୁ ତାଙ୍କ ପାଶ । ନ କରି ପାରିବ ପ୍ରବେଶ ॥
ଏମନ୍ତେ କରି ବର ଦାନ । ନୃସିଂହ ହେଲେ ଅନ୍ତର୍ଧାନ ॥
ତହୁଁ ସେ ଶ୍ୱେତ ନରପତି । ଦୁଃଅନ୍ତେ ଯୋଗ ସମାପତି ॥
ଆନନ୍ଦ ପୁଲକିତ ଚିତ୍ତେ । ପ୍ରଣମି ଦେବ ଜଗନ୍ନାଥେ ॥
କର ଯୋଡ଼ଣ କଲେ ସ୍ତୁତି । ତୁ ପ୍ରଭୁ ଅଗତିର ଗତି ॥
ତାପିତ ଜନର ତୁ ଏକା । ତାପ ନାଶନେ ପ୍ରାଣସଖା ॥
ତୋ ପଦେ ମନ ପ୍ରାଣ ଦେଇ । ଯେ ଜନ ଭକ୍ତିରେ ଭଜଇ ॥
ତାହାର ପାତକ ଅପାର । କ୍ଷମ୍ଭୁ ତୁ ପାତକୀ ସୋଦର ॥
ଏ ଘୋର ସଂସାର ସାଗରେ । ତୋ ବିନା ନାହିଁ କର୍ଣ୍ଣଧାରେ
ଭୀଷଣ ପାପେ ମୁଁ ପତିତ । ଉଦ୍ଧାର କର ଜଗନ୍ନାଥ ॥
ଏମନ୍ତେ ସ୍ତୁତି କରି ଶେଷ । ମନରେ ଅତ୍ୟନ୍ତ ହରଷ ॥
ମହା ପ୍ରସାଦ ସେବା କଲେ । ପ୍ରଜାଗଣଙ୍କୁ ଭୁଞ୍ଜାଇଲେ ॥

ଅକାଳ ମୃତ୍ୟୁ ଜର ବ୍ୟାଧି । ହେଲେ ହରଲେ ଦସ୍ୟୁଗଣଧି ॥
ଏ ରୂପେ ରାଜା ମହାନନ୍ଦେ । ପାଳିଲେ ସୁଖେ ପ୍ରଜାବୃନ୍ଦେ ॥

## ଶ୍ରୀ ମହାପ୍ରସାଦ ଗୁଣ କୀର୍ତ୍ତନ

ସମସ୍ତ ଜଗଦାଦ୍ୟା ଶ୍ରୀଃ ସୃଷ୍ଟି ସ୍ଥିତି ବିନାଶକୃତ୍ ।
ବୈଷ୍ଣବୀ ଶକ୍ତିବତୁଳା ବିଷ୍ଣୁଦେହାର୍ଦ୍ଧଧାରିଣୀ ।
ସୁଧୋପମଂ ପଚତ୍ୟନ୍ନଂ ଭୁଂକ୍ତେ ନାରାୟଣଃ ପ୍ରଭୁଃ ॥

ହେ ମୁନି ଶୁଣ ସ୍ଥିର ଚିତ୍ତେ । ମହାପ୍ରସାଦ ଗୁଣ ଯେତେ ॥
କମଳା କରନ୍ତି ରନ୍ଧନ । ଭୁଞ୍ଜନ୍ତି ପ୍ରଭୁ ନାରାୟଣ ॥
ତାହାଙ୍କ ଉଚ୍ଛିଷ୍ଟ ଭକ୍ଷଣେ । ସକଳ ପାପ ବିନାଶନ ॥
ନାହିଁ ଏ ପ୍ରସାଦର ତୁଲେ । ପବିତ୍ର ବସ୍ତୁ ମହୀତଳେ ॥
ଯେଣୁ କମଳା ପାଚେଣ ଥାଇ । ପାଚକ ସ୍ପର୍ଶ ଦୋଷ ନାହିଁ ॥
ତେଣୁ ଏ ପ୍ରସାଦ ପବିତ୍ର । କେବେହେଁ ନୁହଇ ଦୂଷିତ ॥
ଯଦି ଏ ବେଶ୍ୟା ଗୃହେ ଥିବ । ଅଥବା ଚଣ୍ଡାଳ ଛୁଇଁବ ॥
ତହିଁରେ ନାହିଁ ତିଳେ ଦୋଷ । ଅଟେ ତା ହରିଙ୍କ ସଦୃଶ ॥
ସକଳ ବର୍ଣ୍ଣାଶ୍ରମିଗଣ । ସାମଗ ଯାଜକ ବ୍ରାହ୍ମଣ ॥
ମହାପ୍ରସାଦ ସେବା କଲେ । ପବିତ୍ର ହୋଇଥାନ୍ତି ଭଲେ ॥
ସ୍ୱଦେଶୀ ବିଦେଶୀ ନିର୍ଧନ । ନୃପତି ବଦାନ୍ୟ କୃପଣ ॥
ପୁଣ୍ୟାତ୍ମା ଅବା ଦୁରାଚାର । ଲମ୍ପଟ ଜନ ବ୍ରହ୍ମଚାରୀ ॥
ଗୃହସ୍ଥ ସନ୍ନ୍ୟାସୀ ବ୍ରାହ୍ମଣ । ଚଣ୍ଡାଳ କି ଅବା ଯବନ ॥
ସକଳେ ଏକଇ ପ୍ରକାର । ମହା ପ୍ରସାଦେ ଅଧିକାର ॥
ଏ ମହାପ୍ରସାଦ ସେବନେ । କରିବ ନାହିଁ ଗର୍ବ ମନେ ॥
ଯେ ଜନ ଭକ୍ତି ଭାବ ବହି । ଅଥବା କ୍ଷୁଧା ନାଶ ପାଇଁ ॥
ସନ୍ତୋଷେ କରଇ ସେବନ । ତାହାର ଖଣ୍ଡେ ପାପମାନ ॥

ସର୍ବ ରୋଗୋପଶମନଂ ପୁତ୍ରପୌତ୍ରପ୍ରବର୍ଦ୍ଧନଂ ।
ଦାରିଦ୍ର୍ୟହରଣଂ ଶ୍ରେଷ୍ଠଂ ବିଦ୍ୟାୟୁଃ ଶ୍ରୀପ୍ରଦଂ ଶୁଭଂ ॥

ଭକ୍ତିରେ ପ୍ରସାଦ ସେବିଲେ । ନାଶ ହୁଅଇ ରୋଗ ହେଲେ ॥
ପୁତ୍ର ପୌତ୍ରାଦି ଧନ ଜନ । ବିଦ୍ୟା ବଢ଼ଇ ଦିନ ଦିନ ॥
ଦାରିଦ୍ର୍ୟ ଦୋଷ ହୁଏ ନାଶ । ଆୟୁ ଯେ ବଢ଼ଇ ବିଶେଷ ॥
ପ୍ରସାଦ ସର୍ବ ଦ୍ରବ୍ୟ ସାର । ସର୍ବ ପ୍ରାଣୀଙ୍କ ହିତକର ॥
ତହିଁରେ ଦେବ ଜନାର୍ଦ୍ଦନ । କରୁଣା ସଦା ବିଦ୍ୟମାନ ॥
ସ୍ପର୍ଶ ବିଷୟେ ଦୋଷ ନାହିଁ । ସକଳ କାଳେ ଶୁଦ୍ଧ ଥାଇ ॥
ହେଲେହେଁ ଶୁଷ୍କ ସେହି ଅନ୍ନ । ଅବା ଥିଲେହେଁ ବହୁ ଦିନ ॥
ତଥାପି ପରମ ମହତ । ସେବନେ ଖଣ୍ଡଇ ଦୁରିତ ॥
ହେଲେହେଁ ଶ୍ୱାନ ମୁଖୁଁ ଭ୍ରଷ୍ଟ । ହେଲେ ଭୁଞ୍ଜନ୍ତି ଦ୍ୱିଜ ଶ୍ରେଷ୍ଠ ॥
ଅଶୁଦ୍ଧ ଅବା ଅନାଗୃହ୍ୟ । ମନରେ କିଛି ନ ବିଚାରି ॥
ପାଇବା ମାତ୍ରକେ ସେବନ । ମହାପ୍ରସାଦର ବିଧାନ ॥

ନୈବେଦ୍ୟାନ୍ନଂ ଜଗଦ୍‌ଭର୍ତ୍ତୁର୍ଗାଙ୍ଗଂ ବାରି ସମଂ ଦ୍ୱୟମ୍ ।
ଦୃଷ୍ଟିସ୍ପର୍ଶନଚନ୍ଦ୍ରାଭିର୍ଭକ୍ଷଣାଚ୍ଛାଘନାଶନମ୍ ॥

ଜଗନ୍ନାଥଙ୍କ ନୈବେଦ୍ୟାନ୍ନ । ଗଙ୍ଗା ଜଳର ସମ ଜାଣି ॥
ଦୁହିଙ୍କୁ ଦେଖିଲେ ଛୁଇଁଲେ । ଚିନ୍ତିଲେ ଅବା ସେବା କଲେ
ବହୁତ ଜନ୍ମକୃତପାପ । ଦଣ୍ଡକେ ହୋଇଯାଏ ଲୋପ ॥
ଯେ ଜନ ଦୃଢ଼କରି ମନ । ମହାପ୍ରସାଦ ପ୍ରତିଦିନ ॥
ପ୍ରଥମେ କରିଣ ସେବନ । ପରେ ଭୁଞ୍ଜଇ ଦ୍ରବ୍ୟଅନ୍ନ ॥
ମୁହୂର୍ତ୍ତେ ଖଣ୍ଡେ ତା ଦୁରିତ । ତା ହୁଏ ପରମ ପବିତ୍ର ॥
ଶ୍ରୀହରି ପରମ ଧାମରେ । ଦେହାନ୍ତେ ସେହୁ ବାସ କରେ
ଯେ ମୂଢ଼ ମନ୍ଦ ବୁଦ୍ଧି ହୋଇ । ମହାପ୍ରସାଦକୁ ନିନ୍ଦଇ ॥
ସେ ଅଟେ ଜଗନ୍ନାଥ ଦ୍ରୋହୀ । ଅନେକ ପାତକ ଅର୍ଜଇ ॥
ଅତ୍ୟନ୍ତ ବହି ଅତି ରୋଷ । କ୍ଷମନ୍ତି ନାହିଁ ତାର ଦୋଷ ॥
ଅନେକ କଷଣ ଦିଅନ୍ତି । ନାହିଁ ତାହାର ସଦଗତି ॥
ସେ ନର ଦେହାନ୍ତେ ନରକେ । ଯନ୍ତ୍ରଣା ଭୋଗେ କୁମ୍ଭୀପାକେ ॥

# ଶାଣ୍ଡିଲ୍ୟ ବିପ୍ର ଚରିତ

ମଧ୍ୟଦେଶୋଦ୍ଭବଃ ପୂର୍ବମହାଗଚ୍ଛ ଦ୍ୱିଜୋତ୍ତମଃ ।
ଶିଷ୍ଟାଗୃହୈଃ ସୁବିମଳଃ ଶାସ୍ତ୍ରାର୍ଥପରନିଷ୍ଠିତଃ ॥

ହେ ମୁନି ଶୁଣ ଦେଇ ଚିତ୍ତ । ଶାଣ୍ଡିଲ୍ୟ ବିପ୍ରର ଚରିତ ॥
ଜନ୍ମ ତାହାର ମଧ୍ୟ ଦେଶେ । ଶାସ୍ତ୍ରରେ ପଣ୍ଡିତ ବିଶେଷେ ॥
ପବିତ୍ର ମତ ସଦାଗୃହୀ । ମହାସାତ୍ତ୍ୱିକ ଯାଗକାରୀ ॥
ଶ୍ରୀକ୍ଷେତ୍ରେ ମିଳି ଦେବାର୍ଚ୍ଚନେ । ପ୍ରତ୍ୟହ ପୂଜେ ଜନାର୍ଦ୍ଦନେ ॥
ନିତ୍ୟ ଦ୍ୱିଜ ହୁଅନ୍ତେ ବିଗତ । ସେ ବିପ୍ର ଚିନ୍ତଇ ଏମନ୍ତ ॥
ଯେ ଅନ୍ନ ରାନ୍ଧନ୍ତି ବ୍ରାହ୍ମଣେ । ତାହା କି ଯୋଗ୍ୟ ନାରାୟଣେ ॥
ସେ ଅନ୍ନ ନୁହଇ ପବିତ୍ର । ଭୋଜନ ନୁହଇ ଉଚିତ ॥
ପୂଜା ସାରଣ ଯଜ୍ଞଶେଷ । ଭୋଜନ ଉଚିତ ବିଶେଷ ॥
ଏହା ଅଟଇ ଶାସ୍ତ୍ରମତ । ଗୃହୀର କର୍ତ୍ତବ୍ୟ ଏକାନ୍ତ ॥
ଏମନ୍ତେ ଅଚ୍ୟୁତ ଉଚ୍ଛିଷ୍ଟ । ହେଳା କରିଲା ଦ୍ୱିଜଶ୍ରେଷ୍ଠ ॥
ନିଜେ କମଳା ମୂର୍ତ୍ତିମତୀ । ଏହା ଯେ ରନ୍ଧନ କରନ୍ତି ॥
ତେଣୁ ଏ ନୈବେଦ୍ୟର ଯୋଗ୍ୟ । ଅତି ପବିତ୍ର ଦେବ ଭୋଗ୍ୟ
ଏହା ନ ଜାଣେ ସେ ବ୍ରାହ୍ମଣ । ଶାସ୍ତ୍ର ଜ୍ଞାନ ତା ଅକାରଣ ॥
ଯେତେକ ଅନୁଚରେ ଥିଲେ । ମହାପ୍ରସାଦେ ହେଳା କଲେ ॥
ହୋଇଲା ତାଙ୍କ ଅପରାଧ । କୋପ ଯେ କଲେ ଚକ୍ରାୟୁଧ
ତହୁଁ ସେ ଶାଣ୍ଡିଲ୍ୟ ବ୍ରାହ୍ମଣେ । ଆବର ଅନୁଚରଗଣେ ॥
ହେଲେ ସକଳେ ବ୍ୟାଧିଗ୍ରସ୍ତ । ଉଠିବା ଶକ୍ତି ବିବର୍ଜିତ ॥
ଦେହ ଦୁର୍ବଳ ତନୁ ଦୀନ । ମୁଖରେ ନ ଆସେ ବଚନ ॥
ସେ ବିପ୍ର ଚିନ୍ତଇ ଏମନ୍ତ । ଏହା ଯେ ବଡ଼ ଅଚମ୍ଭିତ ॥
କି ଦୋଷେ ଅମ୍ଭେ ଅକସ୍ମାତ । ସର୍ବେ ହୋଇଲୁଁ ବ୍ୟାଧିଗ୍ରସ୍ତ
କିପାଇଁ ଯନ୍ତ୍ରଣା ଦାରୁଣ । ସର୍ବ ଶରୀର କରେ ଭଗ୍ନ ॥
ନିଶ୍ଚୟ ମୁହିଁ ଅପରାଧୀ । ତେଣୁ ଯାତନା ଏହୁ ବିଧି ॥

ଜ୍ଞାନରେ କର ନାହିଁ ଦୋଷ । କ୍ଷମିବେ ନିଶ୍ଚେଁ ହୃଷୀକେଶ ॥
ସେ ଦ୍ୱିଜ ଭାଳି ଏ ପ୍ରକାରେ । ଧ୍ୟାନ କରିଲେ ଦାମୋଦରେ
ଗୋବିନ୍ଦେ ନିବେଶିଣ ମତି । ନାନା ପ୍ରକାରେ କଲେ ସ୍ତୁତି ॥

ଶାଣ୍ଡିଲ୍ୟ ଉବାଚ

ଜ୍ଞାନତୋଽଜ୍ଞାନତୋ ବାପି ତ୍ୱତ୍‌ପାଦସରସୀରୁହେ ।
କୃତୋଽପରାଧୋ ଯୋ ଦେବ ତଂ କ୍ଷମସ୍ୱ କୃପାମ୍ବୁଧେ ॥
ଭୂମୌ ସ୍ଖଳିତପାଦାନାଂ ଭୂମିରେବାବଲମ୍ବନଂ ।
ତ୍ୱୟି ଜାତାପରାଧାନାଂ ତ୍ୱମେବ ଶରଣଂ ପ୍ରଭୋ ॥

ହେ ପ୍ରଭୁ ଶାସ୍ତ୍ର ଶତ ଶତ । ତୋହର ଶ୍ରୀମୁଖରୁ ଜାତ ॥
ସେ ଶାସ୍ତ୍ର ଧର୍ମର ନିଦାନ । ତା ବିଧି ନ କର ଲଙ୍ଘନ ॥
କଲେକ କର୍ମ ଅନୁଷ୍ଠାନ । ତୋଷ ତୁ ହୁଅ ଜନାର୍ଦ୍ଦନ ॥
ତୋହର ଶାସ୍ତ୍ର ପଥେ ଚାଲି । ଶ୍ରୀ ପଦେ କିବା ଦୋଷ କଲି
ଯେଣୁ ଭୀଷଣ ଏହି ବ୍ୟାଧି । ଯାତନା ଦିଅଇ ଅବଧି ॥
ଅଜ୍ଞାନେ ଅଥବା ସଜ୍ଞାନେ । ନିଶ୍ଚୟ ଦୋଷୀ ମୁଁ ଚରଣେ
ମୋ ଦୋଷ କର ତୁ ମାର୍ଜନ । ଦୟାସାଗର ନାରାୟଣ ॥
ଭୂମିରେ ଖସିଲେ ଚରଣ । ଭୂମି କରଇ ଅଶ୍ରାଦାନ ॥
ଯେ ଅପରାଧୀ ତୋହ ପ୍ରତି । ତୋ ବିନା ନାହିଁ ତାର ଗତି
ତୋର ଦର୍ଶନ ଯେହୁ ପାଇ । ସେ କିପାଁ ଦୁର୍ଦ୍ଦଶା ଲଭଇ ॥
ଦୁଃଖ ସାଗରେ ମୁଁ ପତିତ । ଉଦ୍ଧାର କର ଜଗନ୍ନାଥ ॥
ମୋ ପ୍ରତି ହୁଅ ତୁ ପ୍ରସନ୍ନ । ମୋ ଦୋଷ କର ତୁ ମାର୍ଜ୍ଜନ

ଇତି ସ୍ତୁବାନ୍ତେ ତସ୍ୟାଶୁ ଦେହ ପୀଡ଼ାଗମତ୍ ତଦା ।
ଦଦର୍ଶ ସୋଽଥ ଗୋବିନ୍ଦଂ ନୃହରିଂ ଭକ୍ତବତ୍ସଳଂ ॥
ଦିବ୍ୟ ସିଂହାସନାରୁଢ଼ଂ ଦିବ୍ୟାଲଙ୍କାର ଭୂଷିତଂ ।
ଅଦଦାନଂ ଶ୍ରିୟା ଦତ୍ତଂ ପରମାନ୍ନଂ କରାମ୍ବୁଜେ ॥

ଶୁଣିଣ ସ୍ତୁତି ନାନା ମତ । ମନରେ ସନ୍ତୋଷ ଅତ୍ୟନ୍ତ ॥

ସେ ବିପ୍ର ଦେହଗତ ବ୍ୟାଧି । ହେଲେ ହରିଲେ ଦୟାନିଧି ॥
ତହୁଁ ସେ ମାନସନୟନେ । ଦେଖିଲା ଦିବ୍ୟ ସିଂହାସନେ ॥
ବିଜେ ନୃସିଂହ ନାରାୟଣ । ସତେ କରୁଣା ପ୍ରସ୍ରବଣ ॥
କମଳା ଦେବୀ ଦତ୍ତ ଅନ୍ନ । ସାଦରେ କରନ୍ତି ଗ୍ରହଣ ॥
ନିକ୍ଷେପୁଛନ୍ତି ଉଚ୍ଛିଷ୍ଟାନ୍ନ । ଅସଂଖ୍ୟ ପାତ୍ରେ ପୁଣି ପୁଣି ॥
ଦେଖି ଶାଣ୍ଡିଲ୍ୟ ହେଲା ବୋଧ । ଜାଣିଲା ନିଜ ଅପରାଧ ॥
ବିନୟେ ବିପ୍ର ଯୋଡ଼ି କର । ସ୍ତୁତି କରଇ ଏ ପ୍ରକାର ॥
ହେ ପ୍ରଭୁ ତତ୍ତ୍ୱର ଅତୀତ । ସକଳ ଜ୍ଞାନ ଅଦଭୁତ ॥
ସର୍ବ ତୋହର ଇଚ୍ଛାମୟ । ହୁଅଇ ସୃଷ୍ଟି ସ୍ଥିତି ଲୟ ॥
ମୁହିଁ ଅଜ୍ଞାନ ଅକିଞ୍ଚିତ । ତବ ମାୟାରେ ବିଜଡ଼ିତ ॥
ତୋ ଇଚ୍ଛା ଅନାଦି ଅନନ୍ତ । କାହୁଁ ମୁଁ ହେବି ଅବଗତ ॥
ତହୁଁ ନୃସିଂହ ଭଗବାନ । ବିପ୍ରସ୍ତବରେ ତୁଷ୍ଟମନ ॥
ଉଚ୍ଛିଷ୍ଟ କରେ ଭୁକ୍ତ ଅନ୍ନ । ତା ଅଙ୍ଗେ କଲେକ ଲେପନ ॥
ଉଚ୍ଛିଷ୍ଟ ବିପ୍ର ଦେବା କରି । ଶୋଭିଲା ସତେ ବ୍ରହ୍ମଋଷି ॥
ଜୀବିତେ ଲଭିଲା ମୁକତି । ଶରୀରେ ଶୋହେ ଦିବ୍ୟକାନ୍ତି ॥
ତହୁଁ ହୁଅନ୍ତେ ଧ୍ୟାନଭଙ୍ଗ । ହରଷ ଦେଖି ଦିବ୍ୟଅଙ୍ଗ ॥
ମନେ ଭାବିଲ ଦ୍ୱିଜୋତ୍ତମ । ପ୍ରସାଦ ଅଟେ ଅନୁପମ ॥
ଅଶେଷ ମହିମା ତାହାର । ମୋତେ ଯେ ନ ଥିଲା ଗୋଚର
ତେଣୁ ହେଲାଲି ଜନାର୍ଦ୍ଦନ । ନିଶ୍ଚେଁ ମୁ ଅପରାଧୀ ଜନ ॥
ତହୁଁ ଆନନ୍ଦେ ଦେବୋଚ୍ଛିଷ୍ଟ । ଭୋଜନ କଲେକ ଯଥେଷ୍ଟ ॥
ଆଉର ଅନୁଚରଗଣେ । ଭୁଞ୍ଜାଇ ଆନନ୍ଦିତ ମନେ ॥
ସର୍ବେ ବ୍ୟାଧିରୁ ଲଭି ମୁକ୍ତି । ପାଇଲେ କହିବା ଶକତି ॥
ସେ ବିପ୍ର ପୁଲକିତ ମନେ । ପ୍ରଣାମ କରି ଜନାର୍ଦ୍ଦନେ ॥
ସ୍ତୁତି କରଇ ଯୋଡ଼ି କର । ତୁ ପ୍ରଭୁ ଶରଣସୋଦର ॥
କଳିରେ ପ୍ରତ୍ୟକ୍ଷ ଦେବତା । ପତିତ ଉଦ୍ଧାର କର୍ତ୍ତା ॥
ଶ୍ରୀ ନୀଳାଚଳେ ଚକାଡ଼ୋଳା । ଲଗାଇ ଅଛୁ ନିତ୍ୟଲୀଳା ॥

ସଙ୍ଗତେ ଛନ୍ତି ବଳରାମ । ଜଗତ ମଙ୍ଗଳ ଯା ନାମ ॥
ମଧ୍ୟରେ ସୁଭଦ୍ରା ଜନନୀ । ଅଶେଷ କଲ୍ୟାଣ ଦାୟିନୀ ॥
ଏକ ପାଶରେ ସୁଦର୍ଶନ । ପାପକୁ ଯେ କରେ କର୍ତ୍ତନ ॥
ଜୀବର ପାପ ନାଶ ପାଇଁ । ନିମ୍ବଦାରୁ ରୂପ ହୋଇ ॥
ତୋହର ସ୍ୱରୂପ ଦର୍ଶନ । ପାତକ କରଇ ଦହନ ॥
ମୋହର କେହୁ ନାହିଁ ସାହା । ଅଭୟ ଦିଅ ଜଗବାହା ॥
ଏମନ୍ତେ ନାନା ସ୍ତୁତି କରି । ସନ୍ତୋଷ କଲେ ଶ୍ରୀହରି ॥
ହରଷ ପୁଲକିତ ଗାତ୍ରେ । ବହୁତ ପ୍ରଶଂସି ଶ୍ରୀକ୍ଷେତ୍ରେ ॥
ପ୍ରଣମି ଦେବ ହୃଷୀକେଶେ । ଚଳିଲେ ସର୍ବେ ନିଜ ଦେଶେ ॥

ନୈବେଦ୍ୟାଶନମାହାତ୍ମ୍ୟଂ କଥିତଂ ଦ୍ୱୋ ଦ୍ୱିଜୋତ୍ତମାଃ ।
ଶ୍ରୁତ୍ୱାପି ମହତଃ ପାପାନ୍ମୁଚ୍ୟତେ ପାତକୋତ୍ତମଃ ॥

ପ୍ରସାଦ ସେବନ ମହିମା । ତାହାର ନାହିଁଟି ଉପମା ॥
ହେ ମୁନି ଜୀବହିତ ପାଇଁ । ବିସ୍ତାରି ପ୍ରକାଶିଲି ମୁହିଁ ॥
ଏ କଥା ଅମୃତ ସମାନ । ପାନ କରିବ ସାଧୁ ଜନ ॥
ନିତ୍ୟ ଯେ ସ୍ନାନ ଶେଷ କରି । ହୃଦୟେ ଭକ୍ତି ଭାବ ଧରି ॥
ଜଗନ୍ନାଥଙ୍କ ଚରଣେ । ନ୍ୟସ୍ତ କରିଣ ଶୁଦ୍ଧମନେ ॥
ଏ କଥା କରିବ ପଠନ । ଅବା ଶୁଣିବ ଦେଇ ମନ ॥
ମହାପାତକ ହେବ ନାଶ । ମିଳିବ ବଇକୁଣ୍ଠେ ବାସ ॥
ଅପ୍ରକଟ ଏ ଦିବ୍ୟରସ । ମହାପ୍ରସାଦ କଥା ଶେଷ ॥
ଜଗନ୍ନାଥେ ଧ୍ୟାୟି ଚିତ୍ତେ । ଛନ୍ଦିଲା ଚକ୍ରଧର ଗୀତେ ॥

ଇତି ଶ୍ରୀଉତ୍କଳଖଣ୍ଡେ ଶ୍ରୀଭଗବତ୍ ପ୍ରସାଦ ମାହାତ୍ମ୍ୟ ବର୍ଣ୍ଣନଂ ସମାପ୍ତଂ

ଓଁ ନମୋ ବ୍ରହ୍ମଣ୍ୟଦେବାୟ ଗୋବ୍ରାହ୍ମଣହିତାୟ ଚ ।
ପ୍ରଣତାର୍ତ୍ତିବିନାଶାୟ ଚତୁର୍ବର୍ଗୈକହେତବେ ॥
ହିରଣ୍ୟଗର୍ଭ ପୁରୁଷ ପ୍ରଧାନବ୍ୟକ୍ତରୂପିଣେ ।
ଓଁ ନମୋ ବାସୁଦେବାୟ ଶୁଦ୍ଧଜ୍ଞାନସ୍ୱରୂପିଣେ ॥

---

# ବିଜ୍ଞାପନ

ଭକ୍ତକବି ମଣିଚରଣ ମହାପାତ୍ରଙ୍କ ପ୍ରଣୀତ

# ବ୍ରଜବନ୍ଧୁ ବିରହ

ଏହି ଗ୍ରନ୍ଥ ବହିରେ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା ହୋଇଅଛି। କଂସ ରାଜାଙ୍କ ଆଜ୍ଞାରେ ଅକ୍ରୁର ବ୍ରଜପୁରରୁ ଶ୍ରୀକୃଷ୍ଣଙ୍କୁ ରଥରେ ବସାଇ ମଥୁରାକୁ ନେଇଗଲେ । ଶ୍ରୀକୃଷ୍ଣ ବ୍ରଜରୁ ବିଦାୟ ନେଇ ଯିବାରୁ ତାହାଙ୍କ ବିରହରେ ନନ୍ଦ, ଯଶୋଦା, ରାଧା, ଗୋପୀମାନେ ଓ ଗୋପବାଳକମାନେ କିପରି ଅଧୀର ହୋଇ ଶୋକ କରିଥିଲେ ଓ ବ୍ରଜେଶ୍ୱରୀ ରାଧା ମରଣାପନ୍ନ ହେବାରୁ ବୃନ୍ଦା, ଲଳିତା ପ୍ରଭୃତି ସଖୀମାନେ କିପରି ଉଦ୍ଧବ ସହିତ ପରାମର୍ଶ କରି ପୁଣି ରାଧାକୃଷ୍ଣ ଯୁଗଳମିଳନ କରାଇ ରସକ୍ରୀଡ଼ା କଲେ, ତାହା ଏହି ପୁସ୍ତକ ପାଠ କଲେ ଭକ୍ତ ପାଠକମାନେ ସମସ୍ତ ଜାଣି ପାରିବେ । ଯେଉଁମାନେ ମଥୁରାମଙ୍ଗଳ ପଢ଼ିଛନ୍ତି ସେମାନେ ଥରେ ଏହି ପୁସ୍ତକ ପାଠ କଲେ ବିଶେଷ ଆନନ୍ଦ ପାଇବେ । ୩୦ଟି ଛାନ୍ଦରେ ସମାପ୍ତ ।

ମୂଲ୍ୟ ।୦ ୵

( ଦ୍ୱିତୀୟ ସଂସ୍କରଣ—ଭଲ କାଗଜ, ଭଲ ଛପା )

**ବେପାରୀମାନଙ୍କୁ ଯଥେଷ୍ଟ କମିଶନ ଦିଆଯାଏ ।**

ପ୍ରାପ୍ତିସ୍ଥାନ :—

କଟକ ବାଲୁବଜାର ରାଧାରମଣ ପୁସ୍ତକାଳୟ, ଦାଶରଥି ପୁସ୍ତକାଳୟ ଓ ନିତ୍ୟାନନ୍ଦ ପୁସ୍ତକାଳୟ ।

---

ମୁଦ୍ରାକର—ଶ୍ରୀଲକ୍ଷ୍ମୀଧର ଗରବଡ଼ୁ, ଶ୍ରୀରାଧାରମଣ ପ୍ରେସ,
କଟକ—୧୯୦୧